# ଆମ ପାଇଁ ବିଜ୍ଞାନ

ଲେଖକ :

ଅଧ୍ୟାପକ ଦାମୋଦର ପଣ୍ଡା

ସଦ୍‌ଗ୍ରନ୍ଥମନ୍ଦିର

ପ୍ରକାଶକ :
ଶିବରାମ ମହାପାତ୍ର
ସଦ୍‌ଗ୍ରନ୍ଥମନ୍ଦିର
ବାରାକ୍‌ସରୋଡ଼, ବ୍ରହ୍ମପୁର

ମୁଦ୍ରକ :
ମହାପାତ୍ର ବ୍ରଦର୍ସ,
ବ୍ରହ୍ମପୁରୀ

ମୁଦ୍ରଣ : ୧୯୮୮

ମୂଲ୍ୟ : ଟ ୫-୦୦

# ସୂଚୀପତ୍ର

# ଡାହାଣୀ ଆଳୁଅ

ମାଧବ ଓ ଗୋବିନ୍ଦ ରଥଯାତ୍ରା ଦେଖିବାକୁ ପୁରୀ ଯାଇଥିଲେ । ରଥଯାତ୍ରା ଦେଖିସାରି ଗାଁକୁ ଆସିବାକୁ ବାହାରିଲେ । କିନ୍ତୁ ବସ୍, ଟ୍ରେନ୍ ସବୁଥିରେ ଲୋକ ଭିଡ଼ ହୋଇଥିଲା । ସେମାନେ ବସ୍ କିମ୍ବା ଟ୍ରେନ୍‌ରେ ଚଢ଼ିପାରିଲେ ନାହିଁ । ଗାଁକୁ କିପରି ଫେରିବେ କିଛି ଠିକ୍ କରିପାରିଲେ ନାହିଁ ।



[ ରଥଯାତ୍ରା ]

ରାସ୍ତା ପାଖରେ କିଛି ସମୟ ବୁଲିଲା ପରେ ମଣିଆ ସାଙ୍ଗରେ ଦେଖା ହେଲା । ମଣିଆ ଟ୍ରକ୍‌ରେ ଡ୍ରାଇଭର କାମ କରେ । ମଣିଆ ସେମାନଙ୍କୁ ଗୋଟିଏ ଟ୍ରକ୍‌ରେ ବସାଇଦେଲା । କିନ୍ତୁ ସେମାନଙ୍କର ଭାଗ୍ୟ ଖରାପ । ଟ୍ରକ୍‌ଟି ରାସ୍ତାରେ ଖରାପ ହୋଇଗଲା । ଗାଁ ପାଖରେ ପହଞ୍ଚିଲା ବେଳକୁ ଅଧରାତି ଉପରେ ହୋଇଗଲା ।

ରାସ୍ତା ପାଖରୁ ଅଳ୍ପ ଦୂରରେ ସେମାନଙ୍କର ଗାଁ । କିନ୍ତୁ ରାସ୍ତା ଖୁବ୍ ଅନ୍ଧାର ଓ କାଦୁଆଟିଆ ହୋଇ ଯାଇଥିଲା । ବର୍ଷା ଟପର ଟପର ହେଉଥିଲା । ସେମାନଙ୍କ ପାଖରେ ଟର୍ଚ୍ଚ କମ୍ବା ଛତା କିଛି ନଥିଲା । ବାଧ୍ୟହୋଇ ଅନ୍ଧାରରେ ଭିଜି ଭିଜି ଗାଁ ଆଡ଼କୁ ଚାଲିଲେ ।

ସେମାନଙ୍କ ଗାଁକୁ ଯିବା ବାଟରେ ଗୋଟାଏ ଆମ୍ବତୋଟା ପଡ଼େ । ଆମ୍ବ ତୋଟା ଭିତର ଦେଇ ଯାଉ ଯାଉ ମାଧବ କହିଲା —ଗୋବିନ୍ଦ, କଣ ଗୋଟାଏ ଖସ୍ ଖସ୍ ଶବ୍ଦ ଶୁଣା ଯାଉଛି । ଗୋବିନ୍ଦ ଓ ମାଧବ ଠିଆ ହୋଇଗଲେ । ଦୁହେଁ କାନଡେରି କେଉଁ ଆଡ଼ୁ ଶବ୍ଦ ଆସୁଛି ଶୁଣିଲେ । ଆମ୍ବତୋଟା ସେପାଖ ଆଖୁ କିଆରୀରୁ ଖସ୍ ଖସ୍ ଶବ୍ଦ ଶୁଣା ଯାଉଥିଲା । ମାଧବ ପୁଣି ପଚାରିଲା—ଗୋବିନ୍ଦ, କଣ କିଛି ଶବ୍ଦ ଶୁଣି ପାରୁଛୁ ? ଆରେ ଏ ଶବ୍ଦଟା ଡାହାଣୀର ଶବ୍ଦ ନୁହେଁ ତ ?

ଗୋବିନ୍ଦ କହିଲା—ମାଧବ, ତୁ ଗୋଟାଏ ବଡ଼ ଡରୁଆ । ତୋର ସବୁବେଳେ ସେଇ ଭୂତ ଆଉ ଡାହାଣୀ କଥା । ଆରେ

ମଣିଷ ମଲା ତ ଗଲା, ପୁଣି ଏ ଭୂତ ଡାହାଣୀ କଣ ? ବୁଢ଼ୀମା ପାଖରୁ ଗପ ଶୁଣି ଶୁଣି ତୋ ମୁଣ୍ଡ ଖରାପ ହୋଇଯାଇଛି ।

ତୋଟା ସେପାଖରୁ ଜୋରରେ ଖସ୍ ଖସ୍ ଶବ୍ଦ ଶୁଣାଗଲା । ହଠାତ୍ ଦପ୍ ଦପ୍ କରି ନିଆଁ ହୁଳା ଜଳି ଉଠିଲା ପରି ଦେଖାଗଲା । ଖେଁ...ଖେଁ...ଶବ୍ଦ କରି କିଏ ଦୌଡ଼ିବାର ଶୁଣାଗଲା । ଆଲୁଅଟା ଦପ ଦପ୍ ଜଳୁଥାଏ ଓ ଦୌଡ଼ିଲା ପରି ଜଣା ଯାଉଥାଏ ।

ମାଧବ କହିଲା, "ଗୋବିନ୍ଦ, ଏଥର କଥା ସରିଲା । ତୋ କଥା ଶୁଣି ବଗିଚରେ ଡାହାଣୀ ଆଲୁଅ ଜାଳିଲାଣି । ଆଉ ଡାହାଣୀ ମୁହଁରୁ ରକ୍ଷା ନାହିଁ । କହ କଣ କରିବା ?" ଗୋବିନ୍ଦ ବଡ଼ ଆଶ୍ଚର୍ଯ୍ୟ ହେଲା । କିନ୍ତୁ କିଛି କହିଲା ନାହିଁ । ଗୋବିନ୍ଦ ମନେ ମନେ ଭାବିଲା—ଅନ୍ଧାରଟାରେ ଏ ନିଆଁ ହୁଳା ଆସିଲା କେଉଁଠୁ ? ପୁଣି ଦପ୍ ଦପ୍ କରି ଜଳୁଛି ଓ ଏଠାକୁ ସେଠାକୁ ଦୌଡ଼ୁଛି କେମିତି ? ସତରେ କଣ ଭୂତ, ଡାହାଣୀ ଅଛନ୍ତି ! ଲୋକେ ଡାହାଣୀ ଆଲୁଅ କଥା କହନ୍ତି । ଏଇଟା କଣ ସେଇ ଡାହାଣୀ ଆଲୁଅ !

ଗୋବିନ୍ଦ ପାଖକୁ ମାଧବ ଲାଗି ଆସିଲା । ଦୁହେଁ ଆମ୍ବ ଗଛକୁ ଲାଗି ଠିଆ ହୋଇଗଲେ । ମାଧବ ଭୟରେ ଥରୁଥାଏ । ସେ ଗୋବିନ୍ଦକୁ କହିଲା—ତୁ ପରା ଡାହାଣୀ ଆଲୁଅ କଥା ବିଶ୍ୱାସ କରୁନଥିଲୁ ? ବର୍ତ୍ତମାନ ଆଖିରେ ଦେଖିଲୁତ ? ଗୋବିନ୍ଦ କହିଲା—ହଁ, ଡାହାଣୀ ଆଲୁଅ ଦେଖିଲି । କିନ୍ତୁ ବର୍ତ୍ତମାନ ଏକା ଏକା କଣ କରିବା ?

ହଠାତ୍ ଡାହାଣୀ ଆଲୁଅଟା ତାଙ୍କ ଆଡ଼କୁ ଦୌଡ଼ି ଆସିଲା । ଆଲୁଅଟା ଦପ୍ ଦପ୍ କରି ଲିଭୁଥାଏ ପୁଣି ଜଳୁଥାଏ । ଭୟରେ ମାଧବର ଚେତା ବୁଡ଼ିଗଲା । ଗୋବିନ୍ଦ କଣ କରିବ, କିଛି ବୁଝି ପାରିଲାନି । ତାର ମନେ ପଡ଼ିଗଲା, ଆଖୁ କିଆରୀରେ କିଛି ଲୋକ ନିଶ୍ଚୟ ଶୋଇଥିବେ । ତେଣୁ ସେ ବଡ଼ ପାଟିରେ ଡାକିଲା—କିଏ କେଉଁଠି ଅଛ ଦୌଡ଼ି ଆସ । ଗୋବିନ୍ଦର ଡାକ କେତେ ଲୋକ ଶୁଣି ପାରିଲେ ।



[ ଆଖୁ କିଆରୀରେ ଡାହାଣୀ ବିଲୁଆ ]

ସେହି ଡାକ ଶୁଣି ଆଖୁ କିଆରୀରୁ କେତେକ ଲୋକ ଦୌଡ଼ି ଆସିଲେ । ଡାହାଣୀ ଆଲୁଅଟା ଖୁବ୍ ଜୋରରେ ଦୌଡ଼ିବାକୁ ଲାଗିଲା । ଯେଉଁ ଆଡ଼େ ଆଲୁଅଟା ଯାଉଥିଲା, ସେ ପଟକୁ ଜଣେ ଟର୍ଚ୍ଚ ପକାଇଲା । ଦେଖାଗଲା ବିଲୁଆଟାଏ ଦୌଡ଼ୁଛି ।

ଗୋବିନ୍ଦ ଆଶ୍ଚର୍ଯ୍ୟ ହୋଇ ଚାହିଁଲା । ତାପରେ କହିଲା —ଆରେ ବଳୁଆଟାଏ ରେ ! ତା ପାଟିରୁ ଆଳୁଅ କେମିତି ବାହାରୁଛି ? ଜଣେ ଲୋକ ଗୋଟାଏ ଠେଙ୍ଗା ବଳୁଆଉପରକୁ ଲକ୍ଷ୍ୟ କରି ଫିଙ୍ଗି ଦେଲା । ବଳୁଆ ଗୋଡ଼ରେ ଠେଙ୍ଗାଟା ଖୁବ୍ ଜୋରରେ ବାଜିଲା । ବଳୁଆ ଦୌଡ଼ି ନପାରି ପଡ଼ି ରହିଲା ।

ଲୋକମାନେ ମାଧବକୁ କାନ୍ଧରେ ପକାଇ ଗାଁ ଭିତରକୁ ନେଇ ଆସିଲେ । ତା ଉପରେ ପାଣି ଛିଞ୍ଚିଲେ । ଅଳ୍ପ ସମୟ ପରେ ମାଧବ ଧୀରେ ଧୀରେ ଆଖି ଖୋଲିଲା । ସେ ଦେଖିଲା, ସେ ଖଟ ଉପରେ ଶୋଇଛି । ତା ଚାରିପାଖରେ ଅନେକ ଲୋକ ବସିଛନ୍ତି ।



[ ମାଧବକୁ ଖଟ ଉପରେ ଶୁଆଇଛନ୍ତି ]

ମାଧବର ଚେତା ଫେରିବା ଦେଖି ଗୋବିନ୍ଦ ଖୁସି ହୋଇଗଲା । କିନ୍ତୁ ମାଧବର ଡାହାଣୀ ଭୟ ଯାଉନଥାଏ ।

ସେ ଓଠଟକା ହୋଇ ଚାରିଆଡ଼େ ଖାଲି ଚାହିଁଲା । ପଚାରିଲା— ମୁଁ ଏଠିକି କେମିତି ଆସିଲି ? ମୁଁ ତ ଆମ୍ବତୋଟା ଭିତରେ ଥିଲି । ଗୋବିନ୍ଦ କୁଆଡ଼େ ଗଲା ?

ଗୋବିନ୍ଦ କହିଲା—ମୁଁ ପରା ତୋ ପାଖରେ ବସିଛି । ଜଗନ୍ନାଥଙ୍କ ଦର୍ଶନ କରି ଫେରିଥିଲେ ତ, ଡାହାଣୀଟା କିଛି କରି ପାରିଲାନି । ହେଲେ ଡାହାଣୀଟା ଧରା ପଡ଼ିଗଲା । ମାଧବ ପଚାରିଲା—କଣ କହିଲୁ ? ଡାହାଣୀଟା ଧରା ପଡ଼ିଗଲା !

ଡାକ୍ତର ହରିବାବୁ ପାଖରେ ବସିଥିଲେ । ସେ କହିଲେ— ମାଧବ, କଣ ବିଶ୍ୱାସ ହେଉନାହିଁ ? ଭାଗବତ ଟୁଙ୍ଗୀ ପାଖରେ ଡାହାଣୀଟା ବନ୍ଧା ହୋଇଛି । ଗୁଣିଆମାନେ ଧରି ଆଣିଛନ୍ତି । ଚାଲ ଦେଖିବୁ ।

ମାଧବର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ । ତଥାପି ଡରି ଡରି ଭାଗବତ ଟୁଙ୍ଗୀ ପାଖକୁ ଗଲା । ଦେଖିଲା ବିଲୁଆଟାଏ ବନ୍ଧା ହୋଇଛି । ହରିବାବୁ କହିଲେ—ଏଇ ସେ ଡାହାଣୀ । ଗାଁ ଲୋକମାନେ ଧରି ଆଣିଛନ୍ତି । ମାଧବ କିନ୍ତୁ ବିଶ୍ୱାସ କଲାନି । ସେ ପଚାରିଲା—ଏ ଛଟା ତ ବିଲୁଆଟାଏ । ଏ କଣ ଆଲୁଅ ଜଳାଉଥିଲା ? ମତେ ସମସ୍ତେ ମିଛ କହୁଛ ।

ହରିବାବୁ କହିଲେ—ଆଚ୍ଛା ଶୁଣୁ, ତୁ ଜୁଳୁଜୁଳିଆ ପୋକ ଦେଖିଛୁ ? ରାତିରେ ତା ଲାଞ୍ଜ ପାଖରେ ଦପ୍ ଦପ୍ କରି ଆଲୁଅ ଜଳୁଥିବାର ଦେଖାଯାଏ । ମାଧବ ମୁଣ୍ଡ ଟୁଙ୍ଗାରି ହଁ ମାରିଲା ।

ହରିବାବୁ କହିଲେ—ଜୁଳୁଜୁଳିଆ ଆଲୁଅ ପରି ବିଲୁଆ ପାଟିରେ ଏକ ପ୍ରକାର ଆଲୁଅ ଦେଖାଯାଏ । କାରଣ ବିଲୁଆ

ପାଟିର ଲାଳରେ ଦୁଇଟି ରାସାୟନିକ ପଦାର୍ଥ ଥାଏ । ସେ ଦୁଇଟିର ନାମ ହେଲା ଲୁସିଫେରିନ୍ ଓ ଲୁସି ଫେରିଜ । ବିଲୁଆ ଯେତେ-ବେଳେ ପାଟି ମେଲାକରେ ଏଇ ଦୁଇଟି ରାସାୟନିକ ପଦାର୍ଥରେ ପବନ ବାଜେ । ପବନ ବାଜିଲା ମାତ୍ରେ ତାର ପାଟିରେ ଏକ ଆଲୁଅ ଦେଖାଯାଏ ।

ଗୋବିନ୍ଦ ପଚାରିଲା—ଏ ଆଲୁଅ ବିଲୁଆ ପାଟିକୁ କଣ ପୋଡ଼ିଦିଏ ନାହିଁ ? ହରିବାବୁ କହିଲେ—ନା, ଏ ଆଲୁଅ ଶୀତଳ ଆଲୁଅ । ଏହା ଚୁଲି ନିଆଁ ପରି ଗରମ ନୁହେଁ । ଜଳିଜଳିଆ ପୋକକୁ ହାତରେ ଧରିଲେ ତୁମେ ଏକଥା ଭଲ ଭାବରେ ଜାଣି ପାରିବ ।

ମାଧବ ପଚାରିଲା—ସେ ଆଲୁଅ ଦପ୍ ଦପ୍ କରି ଜଳୁଥିଲା କେମିତି ? ହରିବାବୁ କହିଲେ—ଅନ୍ଧାର ରାତିରେ ବିଲୁଆ ପାଟି ଖୋଲିଲେ ଏ ଆଲୁଅ ଦେଖାଯାଏ । ପୁଣି ପାଟି ବନ୍ଦ କରି-ଦେଲେ ଏ ଆଲୁଅ ଦେଖାଯାଏ ନାହିଁ । ତେଣୁ ଅନ୍ଧାର ରାତିରେ ଆଲୁଅ ଦପ୍ ଦପ୍ ହୋଇ ଜଳିଲା ପରି ଜଣାପଡ଼େ । ବିଲୁଆ ଯେତେବେଳେ ପାଟି ମେଲାକରି ଦୌଡ଼େ ଆଲୁଅଟା ଦୌଡ଼ିଲା ପରି ଜଣାପଡ଼େ । କାରଣ ଅନ୍ଧାରରେ ବିଲୁଆଟା ଦେଖାଯାଏ ନାହିଁ । କେବଳ ଆଲୁଅଟା ଦେଖାଯାଏ । ଏହାକୁ ଲୋକମାନେ 'ଡାହାଣୀ ଆଲୁଅ' କହନ୍ତି ।

ରାତି ପ୍ରାୟ ସାତଟା ହେଲାଣି । ଡାହାଣୀ ବିଲୁଆକୁ ଦେଖିବା ପାଇଁ ପିଲାମାନେ ଜମା ହୋଇ ଯାଇଥିଲେ । ବଗୁଲିଆ ପିଲାଟାଏ ବିଲୁଆ ଉପରକୁ ଢେଳାଟିଏ ପକାଇ ଦେଲା । ବିଲୁଆ ଖେଁ···ଖେଁ କରି ଶବ୍ଦ କରିବାକୁ

ଆରମ୍ଭ କଲା । ସମସ୍ତେ ଦେଖିଲେ ବିଲୁଆ ପାଟିରୁ ଦପ୍ ଦପ୍ କରି ଆଲୁଅ ଜଳୁଛି । ପିଲାମାନେ ଏହା ଦେଖି ଖୁସି ହେଲେ ।



[ ଭେରେଣ୍ଡା ବିଲୁଆ ]

ମାଧବ କହିଲା—ଆରେ ଗୋବିନ୍ଦ, କାଲି ରାତିରେ ଡାହାଣୀଟାତ ଏଭଳି ଶବ୍ଦ କରୁଥିଲା । ଗୋବିନ୍ଦ କହିଲା, "ଡାହାଣୀ କହିବା ଭୁଲି ଯା । ବରଂ କହ ବିଲୁଆ ଶବ୍ଦ କରୁଥିଲା । ଆଉ ବିଲୁଆ ଆଲଅକୁ ଡାହାଣୀ ଆଲୁଅ ଭାବି ତୋର ଚେତା ବୁଡ଼ି ଯାଇଥିଲା ।"

ହରିବାବୁ କହିଲେ—ଏ ବିଲୁଆର ନାଁ ହେଉଛି ଭେରେଣ୍ଡା ବିଲୁଆ ।

ସମସ୍ତେ ଖୁବ ଜୋରରେ ହସି ଉଠିଲେ ।

---

# ଫସଲ କିଆରୀରେ ପୋକ

ମିଶ୍ର ନକେଇ ବାଇଗଣ କିଆରୀକୁ ବୁଲିଗଲେ । ଧାଡ଼ି ଧାଡ଼ି କରି ବାଇଗଣ ଗଛ ଲଗା ଯାଇଥାଏ । ତେଣୁ କିଆରୀଟି ଖୁବ୍ ସୁନ୍ଦର ଦେଖା ଯାଉଥାଏ । ମିଶ୍ର ନକେଇ ହଳିଆକୁ କହିଲେ— ଶୀଘ୍ର ବାଇଗଣ ତୋଳିପକା । ବେପାରୀକୁ ଖବର ଦେଇଛି । ସେ ବର୍ତ୍ତମାନ ଆସି ପହଞ୍ଚିଲେ ସବୁ ବିକିଦେବା ।

କିଛି ସମୟ ପରେ ବେପାରୀ ଆସି ପହଞ୍ଚିଲା । ହଳିଆ ଟୋକା ସବୁ ବାଇଗଣ ବେପାରୀ ପାଖରେ ରଖିଦେଲା । ବେପାରୀ ଖୁସି ହୋଇ ହାତରେ ବାଇଗଣ ନେଇ ଦେଖିଲା । ତାପରେ ବେପାରୀ କହିଲା—ଆଜ୍ଞା, ବାଇଗଣ ସବୁ ଖୁବ୍ ବଡ଼ ବଡ଼ ହୋଇଛି । କିନ୍ତୁ କଣ ହେବ, ସବୁଗୁଡ଼ାକ ପୋକଡ଼ା । ବଜାରରେ ଏ ବାଇଗଣକୁ କେହି କିଣିବେନି । ମୁଁ କାହିଁକି ଆପଣଙ୍କଠାରୁ କିଣିକରି ନେବି ?

ମିଶ୍ର ନକେଇ ବାଇଗଣକୁ ନିଜେ ନେଇ ଦେଖିଲେ । ସବୁ ବାଇଗଣରେ ପୋକ ଖାଇବାର ଚିହ୍ନ ଥିଲା । ମିଶ୍ର ନକେଇ ମୁଣ୍ଡରେ ହାତ ଦେଇ ବସି ପଡ଼ିଲେ । ତାପରେ କହିଲେ—ସବୁ କପାଳର ଦୋଷ । ନହେଲେ ଯେଉଁ ଧନ୍ଦାରେ ହାତ ଦେଉଛି ସବୁ କଣ ଏମିତ ଉଜୁଡ଼ି ଯାଆନ୍ତା ? ଗଲାବର୍ଷ ଡାଲୁଅ ଧାନ

କରିଥିଲି । କାଣ୍ଡବନ୍ଧା ପୋକ ଲାଗିଗଲେ । ଧାନ କେଣ୍ଡା-ଗୁଡ଼ିକ ଅଗାଡ଼ି ହୋଇଗଲା । ଧାନ ଫସଲ କିଛି ମିଳିଲା ନାହିଁ ।

ଶୀତଦିନ ଶେଷ ବେଳକୁ ଆଉ ଥରେ ଅନ୍ୟ କିସମର ଧାନ ଲଗେଇ ଖରାଦିନିଆ ଫସଲ ଅମଳ କରିବାରୁ କିଛି ଧାନ ମିଳିଲା ।



[ ଦାଲୁଅ ଧାନ ରୁଆ ହେଉଛି ]

ବେପାରୀ କହିଲା—ଆଜ୍ଞା, ଆପଣଙ୍କ ଫସଲରେ କଣ ଖାଲି ପୋକ ଲାଗୁଛନ୍ତି ? ଆମ ଗାଁ ଧଡ଼ି ସାହୁ ଧାନ କରିଥିଲା । ଏତେ ବଢ଼ିଆ ଧାନ ଫସଲ କେହି କେବେ ଦେଖିନଥିଲେ । ହେଲେ କଣ ହେବ, ଧାନ କାଟିବାକୁ ଯାଇ ଦେଖେତ ଧାନ କେଣ୍ଡାରେ ନାହିଁ । ସବୁ ଝିଣ୍ଟିକା କାଟି ପକାଇଛନ୍ତି ।

ହଳିଆ ଟୋକା ଆଉ ବୋଝଟାଏ ବାଇଗଣ ନେଇ ପହଞ୍ଚିଲା । ମିଶ୍ର କଟକେଇଙ୍କ କହିଲା—କଟକେଇ କପାଗଛ ଆଉ

କୋବି କିଆରୀ କଥା ବୁଝନ୍ତୁ । ସବୁ ଗଛର ପତ୍ରକୁ ପୋକମାନେ କାଟି ଦେଲେଣି । ହେଲା କଲେ ସବୁ ଫସଲ ବୁଡ଼ିଯିବ ।



[ କପା ଗଛରେ ପୋକ ଲାଗିଛି ]

ମିଶ୍ର କକେଇ କହିଲେ—ମୁଣ୍ଡ ବାଳ ପାଚି ଖୋଳ ହେଲାଣି । ହେଲେ ଏମିତି ପୋକ ଫସଲ କିଆରୀରେ କେବେ ଦେଖି ନଥିଲି । ଧର୍ମକର୍ମ ତ ସବୁ ଗଲାଣି । ଘୋର କଳିକାଳ ଆସି ପହଞ୍ଚିଲାଣି । ଦିଅଁ ଦେବତାଙ୍କୁ କିଏ କେହି ମାନୁଛନ୍ତି । ଆଗେ ଫସଲ କିଆରୀ ମୁଣ୍ଡରେ ପୂଜା ହେଉଥିଲା । କୁକୁଡ଼ା ବଳି ଦିଆ ହେଉଥିଲା । ଗାଁ ସାରା ଲୋକ ବସି ଗ୍ରାମଦେବତୀଙ୍କୁ ମାନଣା କରୁଥିଲେ । ସବୁ ଠିକ୍ ଚାଲୁଥିଲା । ଠିକ୍ ସମୟରେ ବର୍ଷା ହେଉଥିଲା । ଧୋଇ ନାହିଁ କି ମରୁଡ଼ି ନାହିଁ । ପୋକ କଣ ଆମେ ଜାଣିନଥିଲୁ ।

ହଳିଆ କହିଲା—ମିଶ୍ର କକେଇ, ମନକୁ ପାଇଲା ଭଳି କଥାଟା କହିଲ ପରା । ଘୋର କଳିକାଳ, ନିଜ ପେଟକୁ ପୂଜା ନକରି, ଠାକୁର ଠାକୁରାଣୀଙ୍କୁ କିଏ ପୂଜା କରୁଛି । ତେଣୁ ସବୁ ଅଘଟଣ ଘଟୁଛି । ଗଲା ସନ ପରା ଲଞ୍ଜାତାରା ଆକାଶରେ ଦେଖା ଦେଇଥିଲା । ଫସଲ ଆଉ କଣ ହେବ··· ?

ଏତକ ବେଳକୁ ବାବୁଲା ଆସି ପହଞ୍ଚିଲା । ମିଶ୍ର କକେଇଙ୍କୁ ନମସ୍କାର ହେଲା । ତା'ପରେ ସେ କହିଲା—ମିଶ୍ର କକେଇ, ବାଇଗଣ ପରା ବିକ୍ରୀ କରୁଛ ? ଆଜି ଆମେ ପିଲାମାନେ ମିଶି ଭୋକି କରୁଛୁ । ଆମକୁ ପାଞ୍ଚ ଛଅ କେଜି ବାଇଗଣ ଦିଅ ।



[ ବାଇଗଣ ଗଛର ପତ୍ର ଓ ଫଳରେ ପୋକ ଲାଗିଛି ]

ମିଶ୍ର କକେଇ କହିଲେ—ବାବୁଲା ତୁମମାନଙ୍କୁ ଠକିବ କିଏ ? କଲେଜରେ ପାଠ ପଢ଼ୁଛ । ବାଇଗଣ ଅନ୍ୟ କେଉଁଠୁ କିଣି ନିଅ । ବାବୁଲା କହିଲା—କକେଇ, ଭଲ ବାଇଗଣ ତ ହୋଇଛି । କିଏ ବେପାରୀକୁ ସବୁ ବିକି ଦେଇନ୍ତା କି ?

ମିଶ୍ର କକେଇ କହିଲେ—ବେପାରୀକୁ ବିକିବ ବୋଲି ଡାକିଥିଲି । ହେଲେ, ସବୁ ବାଇଗଣ ତ ପୋକଡ଼ା । ବେପାରୀ ନେବାକୁ ମନା କଲା । ବାବୁଲା କହିଲା—କକେଇ, ଏଥିରେ ଭାବିବାର କିଣ ଅଛି । ପୋକ ତ ବାଇଗଣରେ ଲାଗିଛନ୍ତି । ବେଶୀ ଦାମ୍‌ରେ ବିକ୍ରୀ ନହେଲେ କମ୍ ଦାମରେ ବିକ୍ରୀ ହେବ । ସହର ବଜାରରେ ଯେତେ ପନିପରିବା ମିଳୁଛି ସବୁ ତ ଏମିତି । ବାଇଗଣ, ବନ୍ଧାକୋବି, ଫୁଲକୋବି, ଝୁଡ଼ୁଙ୍ଗ ସବୁ ପରିବାରେ ପୋକ ଲାଗୁଛନ୍ତି ।

ମିଶ୍ର କକେଇ କହିଲେ—ବାବୁଲା, ଫସଲ କିଆରୀରେ ଏତେ ପୋକ କାହିଁକି ଲାଗୁଛନ୍ତି ? ଜାଣିଛୁ ଯଦି ଟିକିଏ କହ ।

ବାବୁଲା କହିଲା—କକେଇ, ଆଗ କାଳରେ ପୋକ ସବୁ ବଣ ଜଙ୍ଗଲରେ ରହୁଥିଲେ । ତା'ଛଡ଼ା ଫସଲ କିଆରୀ ପାଖରେ ଥିବା ଅନାବନା ଘାସ ଓ ଛୋଟବଡ଼ ଗଛମାନଙ୍କରେ ରହୁଥିଲେ । କିନ୍ତୁ ଆଜିକାଲି ଫସଲ କିଆରୀରେ ମଧ୍ୟ ରହୁଛନ୍ତି ।

ମିଶ୍ର କକେଇ କହିଲେ—ବଣ ଜଙ୍ଗଲରେ କାହିଁକି ପୋକ ରହୁନାହାନ୍ତି ? ବାବୁଲା କହିଲା—ଲୋକସଂଖ୍ୟା ବଢ଼ିବା ସଙ୍ଗେ ସଙ୍ଗେ ବଣ ଜଙ୍ଗଲର ଆୟତନ କମି ଯାଉଛି । ଲୋକମାନେ ଘର କରିବା ପାଇଁ ଜଙ୍ଗଲରୁ କାଠ କାଟି ନେଉଛନ୍ତି । ନୂଆ ଜମି

କରିବା ପାଇଁ ଜଙ୍ଗଲକୁ ପୂରି କାଟି ସଫା କରି ଦେଉଛନ୍ତି । ଆଉ ପୋକମାନେ ରହିବେ କେଉଁଠି ?



[ ଲୋକେ ଜଙ୍ଗଲରୁ କାଠ କାଟି ନେଉଛନ୍ତି ]

ମିଶ୍ର ଜେଜେଇ ପଚାରିଲେ—ପୋକମାନେ ତ ଆଗେ ଧାନ, ମୁଗ ଇତ୍ୟାଦି ଫସଲକୁ ଖାଉ ନଥିଲେ । ଆଜିକାଲି କାହିଁକି ଖାଉଛନ୍ତି ? ବାବୁଲି କହିଲା—ଖାଇବାକୁ ନ ମିଳିଲେ ଲୋକମାନେ ଅଖାଦ୍ୟ ମଧ୍ୟ ଖାଆନ୍ତି । ସେପରି ପୋକମାନଙ୍କୁ ଖାଇବାକୁ ନ ମିଳିବାରୁ ଫସଲ ଗଛ ପତ୍ର ଖାଉଛନ୍ତି । ତା'ଛଡ଼ା ଆଜିକାଲି ଆମେ ଉନ୍ନତ ବିହନ କିସମ ଲଗାଉଛେ । ଏ ଗଛଗୁଡ଼ିକ କଅଁଳିଆ । ତାକୁ ପୋକମାନେ ସହଜରେ ଖାଉଛନ୍ତି ।

ମିଶ୍ର ଜେଜେଇ କହିଲେ— ହଁ, ସତ କଥା ତ । ଦେଶୀ ଧାନ ଗଛ ଅପେକ୍ଷା ଉନ୍ନତ କିସମ ଧାନ ଗଛରେ ବେଶୀ ପୋକ

ଲାଗନ୍ତି । ବାବୁଲି କହିଲି—ଆମେ ବର୍ଷସାରା ଫସଲ କରୁଛେ । ବର୍ଷା ଋତୁରେ ଧାନ, ଶୀତ ଋତୁରେ ପନିପରିବା, ଗ୍ରୀଷ୍ମ ଋତୁରେ ପୁଣି ଧାନ ଓ ପନିପରିବା ସବୁ କରୁଛେ । ଏହା ଦ୍ୱାରା ପୋକ-ମାନଙ୍କୁ ବର୍ଷସାରା ଖାଇବାକୁ ମିଳୁଛି । ତେଣୁ ସୁବିଧାରେ କ୍ଷେତରେ ରହି ସେମାନେ ବଂଶ ବଢ଼ାଇ ଆମର କ୍ଷତି କରୁଛନ୍ତି ।

ମିଶ୍ର କକେଇ କହିଲେ—ଆଗକାଳରେ ଆମେ ବର୍ଷକୁ ଗୋଟିଏ ଫସଲ କରୁଥିଲେ । ଖରାଦିନ ସାରା ଜମି ପଡ଼ିଆ ପଡ଼ିଥିଲା । ତେଣୁ ପୋକମାନେ ଖରାରେ ମରିଯାଉଥିଲେ । ଆଉ ଖାଇବାକୁ କିଛି ପାଉନଥିଲେ ।

ବାବୁଲି କହିଲି—କକେଇ, କେବଳ ସେତିକରେ ସରିଲା ନାହିଁ । ଆଜିକାଲି ଆମ ଜମିରେ ଅନାବନା ଘାସ ରହୁନାହିଁ । ହୁଡ଼ାରେ ବି ଘାସ ରହୁନି । ତେଣୁ ପୋକମାନେ ଫସଲ ଗଛକୁ ଖାଉଛନ୍ତି ।

ମିଶ୍ର କକେଇ କହିଲେ—ତାହେଲେ ତୁ କଣ କହୁଛୁ ଏ ପୋକ ସବୁ ଆମମାନଙ୍କ ଯୋଗୁଁ ଲାଗୁଛନ୍ତି ? ବାବୁଲି କହିଲି—କକେଇ, ଆମ ଜମିରେ ପୋକ ହେଉଛନ୍ତି । ଏଥିପାଇଁ ଆମେମାନେ ହିଁ ମଧ୍ୟ ଦାୟୀ । କାରଣ ବଣ ଜଙ୍ଗଲରେ ଏକା ସ୍ଥାନରେ ବିଭିନ୍ନ ପ୍ରକାରର ଗଛ ଥାଏ । ପୋକମାନେ ସବୁ ଗଛକୁ ଖାଇପାରନ୍ତି ନାହିଁ । କେବଳ ଦୁଇ ତିନୋଟି ପ୍ରକାରର ଗଛକୁ ଖାଆନ୍ତି । ତେଣୁ ବଂଶ ବଢ଼ାଇ ପାରନ୍ତି ନାହିଁ । କିନ୍ତୁ ଆମେମାନେ ଶହ ଶହ ଏକର ଧାନ ଲାଗଲାଗ କରୁଛେ କିମ୍ବା ମୁଗ, ବିରି, ପନିପରିବା କରୁଛେ । ଫଳରେ ପୋକମାନଙ୍କୁ

ସୁବିଧାରେ ଖାଦ୍ୟ ମିଳୁଛି । ସେମାନେ ବଂଶ ବଢ଼ାଇ ଆମକୁ କ୍ଷତିରେ ପକାଉଛନ୍ତି ।



[ କୀଟନାଶକ ଔଷଧ ଯନ୍ତ୍ର ସାହାଯ୍ୟରେ ପକାଯାଉଛି ]

ମଂଶ୍ରୀ କକେଇ କହିଲେ—ହଁ, ସତ କଥା । ଆମେ ସବୁ ଏପରି କରୁଛେ । ବାବୁଲି କହିଲା—କକେଇ, ଆମେ ଯଦି ବର୍ଷକୁ ତିନି ତିନିଟା ଫସଲ ନ କରିବା ତା'ହେଲେ ଖାଇବା କଅଣ ? ଲୋକ ସଂଖ୍ୟା ତ ବଢ଼ିଲାଣି । ତେଣୁ ଆମେ ଠିକ୍ ସମୟରେ ଔଷଧ ପକାଇ ମାରି ପାରିଲେ ଆମର କିଛି କ୍ଷତି ହେବନି । ତା ବ୍ୟତୀତ ପୋକ ନ ଲାଗୁଥିବା ବିହନ କିସମ ବ୍ୟବହାର କଲେ ଔଷଧ ପକାଇବା ଦରକାର ପଡ଼ିବ ନାହିଁ ।

ମିଶ୍ର କକେଇ ପଚାରିଲେ—ଏମିତି କଣ ଗଛ ଅଛି, ଯାହାକୁ ପୋକ ଖାଇବ ନାହିଁ ? ବାବୁଲି କହିଲି—ବୈଜ୍ଞାନିକ ମାନେ କହନ୍ତି—ଧାନ, ଗହମ, ମୁଗ ଇତ୍ୟାଦି ଗଛର ଏମିତି ଗୁଣ ଅଛି ଯେ ସେଥିରେ କେତେକ ପୋକ ଲାଗନ୍ତି ନାହିଁ । ଆମେ ଯଦି ସେ ବିହନ ବ୍ୟବହାର କରିବା, ପୋକ ଦାଉରୁ ରକ୍ଷା ପାଇପାରିବା ।

ମିଶ୍ର କକେଇ କହିଲେ—ବାବୁଲି ଭଲ କଥାଟିଏ ଆଜି କହିଲୁ । ଏଥର ଚାଲ ଯିବା । ତୁମ ଘରକୁ ପାଇଁ କିଛି ଭଲ ବାଇଗଣ ନେଇ ଯା । କାଲି ଘର ଆଡ଼େ ଆସିବୁ ।

ବାବୁଲି କିଛି ଭଲ ବାଇଗଣ ନେଇ ଚାଲିଗଲି ।

———

# ମହାକାଶରେ ମଣିଷ

ଦଶହରା ଛୁଟି । ସ୍କୁଲ, କଲେଜ, ଅଫିସ ସବୁ ବନ୍ଦ । ଶଙ୍କର ଗାଁକୁ ଆସିଥାଏ । ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟରେ ପଢ଼େ । ଟିକି ଟିକି ପିଲାମାନେ ତାକୁ ଭାରି ଭଲ ପାଆନ୍ତି । ତେଣୁ ସନ୍ଧ୍ୟା ହେଉ ହେଉ ତା ଘରପାଖେ ବସିଗଲେ । କହିଲେ—"ଦାଦା, ଆଜି ଗୋଟିଏ ବଢ଼ିଆ ଗପ କହ ।"

ଶଙ୍କର ବଡ଼ ଅଡ଼ୁଆରେ ପଡ଼ିଲା । ହସି ହସି କହିଲା—"ଦଶଦିନ ହେଲା ତୁମକୁ ସବୁଦିନ ସନ୍ଧ୍ୟାରେ ବସି ଗପ କହୁଛି । ଆଜି ପୁଣି କି ଗପ କହିବି ? ଯାଅ, ଆଈ ବୁଢ଼ୀ ପାଖରେ ବସି-ଯାଅ । କେତେ ବଢ଼ିଆ ବଢ଼ିଆ ଗପ ଶୁଣିବ ।"

ପିଲାମାନେ କହିଲେ—"ଦାଦା, କଣ ବୁଢ଼ୀ ଅସୁରୁଣୀ ଆଉ ରଜାପୁଅ ଗପ । ସେ ଗପ ବୁଢ଼ୀମା" ଆମକୁ ଶହେଥରରୁ ଅଧିକା କହିବଣି । ସେଥିରେ ଆଉ କଣ ନୂଆ କିଛି ଅଛି ଯେ ମଜା ଆସିବ ।"

ଆଈ ନାଁରେ ଆପତ୍ତି ଶୁଣି ବେବି ରାଗିଗଲା । ବେବି କହିଲା—"ଆଈବୁଢ଼ୀ ଯେମିତି ଗପ କହେ ନା କିଏ କହିବ ? ଦାଦା ତ ଖାଲି ଇଆଡ଼ୁ ସିଆଡ଼ୁ ଗପ କହନ୍ତି । ଆଈ ମା' ରଜା ପୁଅ ଗପ କହେ । ରଜାପୁଅ ବୁଢ଼ୀ ଅସୁରୁଣୀକୁ ମାରିବା ପାଇଁ କେମିତି ଆକାଶକୁ ଉଡ଼ିଯାଏ··· ।"

ସମସ୍ତେ ଫେଁ ଫେଁ କରି ହସିଉଠିଲେ । କହିଲେ, "ବେବି, ରଜାପୁଅ ମନପବନ କଠଉ ଲଗେଇ ଉଡ଼ୁଥିଲା ।

ଆଜିକାଲି ସାଧାରଣ ମଣିଷମାନେ ମହାକାଶ ଯାନରେ ବସି ଚନ୍ଦ୍ରକୁ ଗଲେଣି ।" ବେବନା ମନକୁ କଥାଟା ପରତେ



[ ଚନ୍ଦ୍ର ଲୋକରେ ମଣିଷ ]

ଗଲାନାହିଁ । ମାଏ ଦ୍ୱିତୀୟ ଶ୍ରେଣୀରେ ପଢ଼ୁଛି । ସେ କହିଲା, "ତୁଛା ମିଛ କଥା । ଚନ୍ଦ୍ରକୁ ଯାଇଥିଲେ, ଆଈ ବୁଢ଼ୀ ତ ନିଶ୍ଚୟ କହିଥାନ୍ତା ।"

ଶଙ୍କର କହିଲା—"ବେବି, ଏଇଟା ସତକଥା । ଚନ୍ଦ୍ରକୁ ଲୋକମାନେ ଅନେକ ବର୍ଷ ହେଲା ଗଲେଣି ।"

ବେବି କହିଲା, "କଣ ଉଡ଼ାଜାହାଜରେ ଉଡ଼ି ଉଡ଼ି ଗଲେ ?"

ଶଙ୍କର କହିଲା, "ଉଡ଼ାଜାହାଜ ମହାକାଶକୁ ଯାଇପାରିବ ନାହିଁ । ମହାକାଶକୁ ଯିବା ପାଇଁ ମହାକାଶଯାନ ବ୍ୟବହାର କରାଯାଏ । ଆପୋଲୋ ମହାକାଶ ଯାନରେ ଆମେରିକାର ଦୁଇଜଣ ଯାଇ ଚନ୍ଦ୍ର ଉପରେ ଓହ୍ଲାଇଥିଲେ । ସେମାନଙ୍କ ନାଁ ହେଲା ନିଲ ଆର୍ମଷ୍ଟ୍ରଙ୍ଗ ଓ ଏଡ୍‌ଉଇନ ଆଲଡ୍ରିନ ।"

କୁନି ପଚାରିଲା—"ତା ପୂର୍ବରୁ କଣ କେହି ଚନ୍ଦ୍ରକୁ ଯାଇ ନଥିଲେ ?"

ଶଙ୍କର କହିଲା, "ନା, ତା ପୂର୍ବରୁ କେହି ମଣିଷ ଚନ୍ଦ୍ରକୁ ଯାଇନଥିଲେ । କିନ୍ତୁ ଅନେକ ଲୋକ ମହାକାଶକୁ ଯାଇଥିଲେ ।"

ବେବି ପଚାରିଲା—"ଦାଦା, ପ୍ରଥମେ କେମିତି ମହାକାଶକୁ ଯାନ ପଠାଗଲା ?"

ଶଙ୍କର କହିଲା, "ଲୋକମାନେ ପକ୍ଷୀକୁ ଦେଖି ଆକାଶରେ ଉଡ଼ିବାକୁ ଶିଖିଲେ । ମାଛ ଓ ଜଳ ଜୀବମାନଙ୍କୁ ଦେଖି ଜଳରେ ବିଚରଣ କରିବାକୁ ଶିଖିଲେ । ଏଥିପାଇଁ ସ୍ୱତନ୍ତ୍ର ଧରଣର ଉଡ଼ାଜାହାଜ, ଜଳଜାହାଜ ତିଆରି ହେଲା । ବୈଜ୍ଞାନିକମାନେ ଜଳ, ସ୍ଥଳ, ଆକାଶ ଚାରିଆଡ଼େ ସୁବିଧାରେ ବୁଲିପାରିଲେ । କିନ୍ତୁ ସେଥିରେ ସନ୍ତୁଷ୍ଟ ହେଲେ ନାହିଁ ।"

କୁନି କହିଲା—"ସେମାନେ କଣ କଲେ ? ଶଙ୍କର କହିଲା, "ସେମାନେ ଦୂରଦୂରାନ୍ତରେ ଥିବା ଗ୍ରହ, ଉପଗ୍ରହକୁ ଯିବାକୁ

ଗ୍ରହିଁଲେ । ସେମାନେ ପ୍ରଥମେ ଚନ୍ଦ୍ରକୁ ଯିବାକୁ ଠିକ୍ କଲେ । କାରଣ ଚନ୍ଦ୍ର ଆମ ପୃଥିବୀର ଉପଗ୍ରହ ଓ ପୃଥିବୀଠାରୁ ନିକଟତମ । ଚନ୍ଦ୍ରକୁ ଯିବା ପାଇଁ ଯିନା ମନକଲେ କିନ୍ତୁ ଯିବେ କେମିତି ? ଚନ୍ଦ୍ର ପୃଥିବୀଠାରୁ ବହୁତ ଦୂରରେ ଅବସ୍ଥିତ । ଏହାଛଡ଼ା ପୃଥିବୀର ବାୟୁମଣ୍ଡଳ ପାର ହୋଇଗଲେ, ଆଉ ବାୟୁ ମିଳିବ ନାହିଁ । ବାୟୁ ନଥିଲେ ପୁଣି ବଞ୍ଚିବେ କେମିତି ?"

ବେବି କହିଲା—"ତାହେଲେ ମହାକାଶକୁ ଯିବା ତ ବଡ଼ ଅସୁବିଧା । ବୈଜ୍ଞାନିକମାନେ ପୁଣି କଣ କଲେ ? ଶଙ୍କର କହିଲା, "ବୈଜ୍ଞାନିକମାନେ ଡରିଲେ ନାହିଁ । ଅନେକ ପରୀକ୍ଷା ନିରୀକ୍ଷା କଲେ । ତାପରେ ମହାକାଶ ଯାନ ଉଦ୍ଭାବନ କଲେ । ସର୍ବ ପ୍ରଥମେ ସୋଭିଏତ ଋଷିଆ ସ୍ପୁଟନିକ ମହାକାଶଯାନ ମହାକାଶକୁ ପଠାଇଲା । କିନ୍ତୁ ଏଥିରେ କେହି ମଣିଷ ନଥିଲେ ।"

କୁନି ପଗ୍ଚରିଲା—"ତାହେଲେ ସ୍ପୁଟନିକ କେମିତି ଗ୍ଚଳୁଥିଲା ? ଶଙ୍କର କହିଲା, "ସେଥିରେ ସ୍ୱତନ୍ତ୍ର ଧରଣର ଯନ୍ତ୍ର ଖଞ୍ଜାଯାଇଥିଲା । ପୃଥିବୀ ଉପରୁ ବୈଜ୍ଞାନିକମାନେ ଏହି ଯନ୍ତ୍ର-ଗୁଡ଼ିକୁ ଚଳାଉଥିଲେ । କିଛି ଦିନପରେ ସ୍ପୁଟନିକ-୨ ମହାକାଶକୁ ଗଲା । ଏଥିରେ ଗୋଟିଏ କୁକୁରକୁ ପଠାଯାଇଥିଲା । ତା ନାଁ ହେଲା 'ଲାଇକା ।'

ବେବି ପଗ୍ଚରିଲା—"କୁକୁରକୁ କାହିଁକି ପଠାଇଲେ ? ମଣିଷକୁ କାହିଁକି ପଠାଇଲେ ନାହିଁ ? ଶଙ୍କର କହିଲା, "ମହାକାଶକୁ ଜୀବଜନ୍ତୁ ଗଲେ କଣ ହୁଏ ବୈଜ୍ଞାନିକମାନେ ଜାଣିନଥିଲେ । ତେଣୁ ସେମାନେ କୁକୁରକୁ ପଠାଇଲେ । କୁକୁର

ଉପରେ ମହାକାଶ ଯାତ୍ରା କି ପ୍ରଭାବ ପକାଉଛି ତାହା ଜାଣି ନେଲେ । ତାପରେ ମହାକାଶଯାନରେ ବୈଜ୍ଞାନିକମାନେ ମହାକାଶକୁ ଗଲେ ।”

ସବୁ ପିଲାମାନେ ପଚାରିଲେ—ଦାଦା, ସର୍ବ ପ୍ରଥମେ କିଏ ମହାକାଶକୁ ଯାଇଥିଲା ? ଶଙ୍କର କହିଲା, “ସୋଭିଏତ ଦେଶର ୟୁରିଗାଗାରିନ୍ ୧୯୬୧ ମସିହାରେ ପ୍ରଥମେ ମହାକାଶକୁ ଯାଇଥିଲେ । ସେ ଭୋଷ୍ଟକ ନାମକ ମହାକାଶ ଯାନରେ ମହାକାଶକୁ ଯାଇଥିଲେ । ଅନେକ ତଥ୍ୟ ସଂଗ୍ରହ କରି ସେ ଫେରି ଆସିଲେ ।

ବେବି ପଚାରିଲା—ଦାଦା, କେହି ସ୍ତ୍ରୀଲୋକ କଣ ମହାକାଶକୁ ଯାଇନାହାନ୍ତି ? ଶଙ୍କର କହିଲା—“ହଁ, ସୋଭିଏତ ଦେଶର ଭାଲେନ୍ତିନା ତେରେସ୍କୋଭା ୧୯୬୩ରେ ମହାକାଶକୁ ଯାଇଥିଲେ । ସେ ପୃଥିବୀ ଚାରିପାଖରେ ୪୮ଥର ବୁଲିଥିଲେ । ତା’ ଛଡ଼ା ରୁଷିଆ ଶ୍ୱେତଲନା ସାବିତ୍‌ସ୍କାୟା ଓ ଆମେରିକାର ସାଲିରାଇଡ଼ ମହାକାଶକୁ ଯାଇଛନ୍ତି ।”

କୁନି ପଚାରିଲା—“ଦାଦା, ମହାକାଶଚାରୀମାନେ କଣ କେବଳ ମହାକାଶଯାନ ଭିତରେ ରହନ୍ତି ? ସେମାନେ କଣ ବାହାରକୁ ବାହାରନ୍ତି ନାହିଁ ?” ଶଙ୍କର କହିଲା—ମହାକାଶ-ଚାରୀମାନେ ସବୁବେଳେ ମହାକାଶଯାନ ଭିତରେ ରହନ୍ତି ନାହିଁ । ମହାକାଶଚାରୀମାନେ ମହାକାଶରେ କଣ କରିବେ ତାହା ପୂର୍ବରୁ ଠିକ୍ ହୋଇଥାଏ । ତାରି ଅନୁସାରେ ସେମାନେ କାମ କରନ୍ତି । ଆମେରିକାର ଏଡ଼ୱାର୍ଡ଼ ହ୍ୱାଇଟ ପ୍ରଥମେ ମହାକାଶରେ ବୁଲାଚଲା କରିଥିଲେ ।

ବେବି ପ୍ରଶ୍ନକଲା—ଦାଦା, ମହାକାଶରେ ତ ଖୁବ୍ ଥଣ୍ଡା ହେଉଥିବ ? ସେ କଣ ପିନ୍ଧି ଥିଲେ ? ଶଙ୍କର କହିଲା, "ତୁମକୁ




[ ସାଲ୍ୟୁଟ-୭ ମହାକାଶ କେନ୍ଦ୍ର ]

ଆଗରୁ କହିଛି, ମହାକାଶରେ ପୃଥିବୀ ପରି ସୁବିଧା ନାହିଁ । ସେଠାରେ ବାୟୁ ଆଦୌ ନାହିଁ । ମହାକାଶର ଚାପ ଓ ତାପକୁ ସାଧାରଣ ପୋଷାକ ପିନ୍ଧିଲେ ମଣିଷ ସହ୍ୟ କରିପାରିବ ନାହିଁ । ତେଣୁ ମହାକାଶଚାରୀମାନେ ସ୍ୱତନ୍ତ୍ର ଧରଣର ମହାକାଶ ପୋଷାକ ପିନ୍ଧିଥାଆନ୍ତି । ଏ ପୋଷାକ ପିନ୍ଧି ସେମାନେ ମହାକାଶ ଯିବା ଆଗରୁ ଅଭ୍ୟାସ କରନ୍ତି ।"

ଶଙ୍କର ଗାଁକୁ ଆସିଲା ଦିନଠାରୁ ଅଈବୁଢ଼ୀ ପାଖରେ ପିଲାମାନେ ବସୁନାହାନ୍ତି । ତେଣୁ ଆଈବୁଢ଼ୀକୁ ଏକା ଏକା

ବସିବାକୁ ଭଲ ଲାଗୁନଥାଏ । ସେ କେତେବେଳେ ଚୁପ୍ ଚୁପ୍ ଆସି ଅନ୍ଧାରରେ ବସି ମହାକାଶ କଥା ଶୁଣୁଥାଏ । ପିଲାମାନେ ଏକଥା ଆଦୌ ଜାଣିନଥାନ୍ତି । ଆଈବୁଢ଼ୀ ପଚାରିଲେ—"ଆରେ ଶଙ୍କର, ଏଇ ଆଠ ଦଶ ବର୍ଷ ତଳେ କଣ ଗୋଟାଏ ଆକାଶରୁ ଖସିବ ବୋଲି ଲୋକମାନେ ଛାନିଆ ହେଉଥିଲେ । କଣ ତା' ନାଁଟା ମୋର ମନେପଡ଼ୁନି··· ।"

ସମସ୍ତେ ପଛକୁ ଚାହିଁଲେ, ଆଈବୁଢ଼ୀ ବସି ତାଙ୍କ ସାଙ୍ଗରେ ସବୁକଥା ଶୁଣୁଛନ୍ତି । ଶଙ୍କର କହିଲା—"ସେଇଟା ହେଉଛି ସ୍କାଇଲାବ । ଆମେରିକାର ଏକ ମହାକାଶ ଗବେଷଣା କେନ୍ଦ୍ର । କେତେକ ଯାନ୍ତ୍ରିକ ଗଣ୍ଡଗୋଳ ଯୋଗୁଁ ତାହା ଖସି ପଡ଼ିଥିଲା ।" କୁନୁ ପଚାରିଲା—"ଦାଦା, ମହାକାଶ ଗବେଷଣା କେନ୍ଦ୍ର ପୁଣି କଣ ? ସେଠାରେ କଣ ହୁଏ ?"

ଶଙ୍କର କହିଲା—"ପୃଥିବୀରେ ବହୁତ ଗବେଷଣା କେନ୍ଦ୍ର ରହିଛି । ସେପରି ମହାକାଶରେ ଗବେଷଣା କେନ୍ଦ୍ର ନିର୍ମାଣ କରାଯାଇଛି । ମହାକାଶ ଯାନରେ ବୈଜ୍ଞାନିକମାନେ ଏହି କେନ୍ଦ୍ରକୁ ଯାଆନ୍ତି । ସେଠାରେ ରହି ବୈଜ୍ଞାନିକ ଗବେଷଣା କରନ୍ତି । ଆମେରିକାର ମହାକାଶରେ ସ୍କାଇଲାବ ଗବେଷଣା କେନ୍ଦ୍ର ରହିଛି । ସେହିପରି ରୁଷିଆର ସାଲ୍ୟୁଟ ନାମକ କେତେକ ଗବେଷଣା କେନ୍ଦ୍ର ରହିଛି । ଏହି ସାଲ୍ୟୁଟ ମହାକାଶ କେନ୍ଦ୍ରକୁ ଜଣେ ଭାରତୀୟ ମଧ୍ୟ ଯାଇଛନ୍ତି ।

କୁନୁ କହିଲା—"ହଁ, ସାର ସେଦିନ କ୍ଲାସରେ କହୁଥିଲେ । ତାଙ୍କ ନାଁ ରାକେଶ ଶର୍ମା ।" ଶଙ୍କର କହିଲା, "ରାକେଶ ଶର୍ମା

ହେଉଛନ୍ତି ପ୍ରଥମ ଭାରତୀୟ ମହାକାଶଚାରୀ । ରୁଷିଆ ଓ ଭାରତ ଉଭୟ ଦେଶର ମହାକାଶଚାରୀ ସୋୟୁଜ ମହାକାଶ ଯାନରେ ମହାକାଶକୁ ଯାଇଥିଲେ ।




[ ପ୍ରଥମ ଭାରତୀୟ ମହାକାଶଚାରୀ ରାକେଶ ଶର୍ମା ]

ଏହାଛଡ଼ା ଆମେରିକା ଏକ ନୂଆ ମହାକାଶ ସଟଲ ଉଦ୍ଭାବନ କରିଛି । ଏଗୁଡ଼ିକର ନାମ ହେଲା—କଲମ୍ବିଆ, ଚ୍ୟାଲେଞ୍ଜର, ଡିସ୍କଭରୀ ଓ ଆଟଲାଣ୍ଟିସ । ଏହି ମହାକାଶ

ଯାନରେ ମହାକାଶକୁ ଯାଇ ଖୁବ୍ ସହଜରେ ଫେରି ଆସି ହେବ ।

ମାଆ ଆସି ପହଞ୍ଚିଲେ ଓ କହିଲେ—"ମହାକାଶ କଥା ଆଜି ସେତିକରେ ରଖ । ଅନେକ ବେଳ ହେଲାଣି । ଚାଲ, କିଛି ଖାଇନେବ ।"

ପିଲାମାନେ ଉଠିଗଲେ । କହିଲେ, "ଦାଦା, ବାକୀ ଯାହା ରହିଲା କାଲି ନିଶ୍ଚେ କହିବ ।"

---

# ମାଟି ଭିତରେ ଫଳ

ଗୋପାଳବାବୁ ଉଦ୍ଭିଦ ବିଜ୍ଞାନର ଅଧ୍ୟାପକ । ତାଙ୍କର ଦୁଇ ପୁଅ ରାମୁ ଓ ଶାମୁ । ରାମୁ ପ୍ରଥମ ଶ୍ରେଣୀରେ ଓ ଶାମୁ ଷଷ୍ଠ ଶ୍ରେଣୀରେ ପଢ଼ନ୍ତି । ଗୋପାଳବାବୁ ସେମାନଙ୍କୁ ଖୁବ୍ ଭଲ ପାଆନ୍ତି । ଅବସର ସମୟରେ ରାମୁ ଓ ଶାମୁଙ୍କୁ ପାଖରେ ବସାଇ ଅନେକ ଗପ କହନ୍ତି । କେତେବେଳେ ବୁଢ଼ୀ ଅସୁରୁଣୀ ଗପ ଓ ବେଳେବେଳେ ବିଜ୍ଞାନ ଗପ କହନ୍ତି । ରାମୁ ଓ ଶାମୁ ଏସବୁ ଶୁଣିବାରେ ଭାରି ଆଗ୍ରହୀ ।

ରବିବାର ଦିନ ସ୍କୁଲ ଛୁଟି ଥାଏ । ମା' କହିଲେ "ରାମୁ ଶାମୁ ଶୀଘ୍ର ପାଠପଢ଼ା ସାରିଦିଅ । ପାଠପଢ଼ା ସରିଲେ ଟେଲିଭିଜନରେ ରାମାୟଣ ଦେଖିବ ।" ରାମୁଟା ବଡ଼ ଚଗଲା । ମା'ଙ୍କ କଥା ଶୁଣି ପୃଷ୍ଠା ପରେ ପୃଷ୍ଠା ଓଲଟାଇ ପକାଇଲା । କିଛି ଲେଖିସାରି ବଡ଼ପାଟିରେ ପଢ଼ିବାକୁ ଲାଗିଲା । ରାମୁ କହିଲା, "ଆତଫଳେ ଡାଳେ, ଆଳୁ ଫଳେ ମୂଳେ ।"

ଶାମୁ ବସି ଅଙ୍କ କଷୁଥିଲା । ରାମୁର ବଡ଼ପାଟି ଶୁଣି ବିରକ୍ତ ହେଲା । କହିଲା—"କେତେ ବଡ଼ ପାଟିରେ ପଢ଼ୁଛୁ ? ଏତେ ବଡ଼ ପାଟିରେ ପଢ଼ୁଛୁ ତ ! କହିଲୁ, ଦେଖି ଆଳୁଟା ଫଳ ନା ମୂଳ ?" ରାମୁ ସାଙ୍ଗେ ସାଙ୍ଗେ କହିଲା, "ଏଇ ସାଧାରଣ କଥାଟା ବୁଝିପାରୁନୁ ? ଆତ ଡାଳରେ ଫଳେ । ତେଣୁ ଆତ ଗୋଟିଏ ଫଳ । ଆଳୁ ମାଟି ଭିତରେ ଫଳୁଛି । ତେଣୁ ଆଳୁ ଗୋଟିଏ ମୂଳ ।"

ଶାମୁ କହିଲା—ରାମୁ, ତୁ ଅଧା ଠିକ୍ କହୁଛୁ, ଆଉ ଅଧା ଭୁଲ କହୁଛୁ । ଆତ ଗୋଟିଏ ଫଳ, କିନ୍ତୁ ଆଳୁ ଗୋଟିଏ ମୂଳ ନହେଁ । ଆଳୁକୁ ଗଛର କାଣ୍ଡ କୁହାଯାଏ ।” ରାମୁ କହିଲା—“ମିଛ କଥା । ତୁ କିଛି ଜାଣିନୁ । କାଣ୍ଡଟା ମାଟି ଭିତରେ ରହିଲା କେମିତି ?” ଶାମୁ କହିଲା ଏଇ ମୋ ବିଜ୍ଞାନ ବହି ଦେଖ । ଏଥିରେ ପରା ଲେଖା ହୋଇଛି । ଆଳୁ ଗୋଟିଏ ରୂପାନ୍ତରିତ କାଣ୍ଡ । ଏଥିରେ କାଣ୍ଡର ସବୁ ଲକ୍ଷଣ ରହିଛି ।”

ଏତିକିବେଳେ ମା’ ଆସି ପହଞ୍ଚିଲେ ଓ କହିଲେ—କଣ ପାଠପଢ଼ା ସରିଲାଣି ? ଖୁବ୍ ଜୋର୍‌ରେ ତ କଥାବାର୍ତ୍ତା ଚାଲିଛି । ପାଠପଢ଼ା ସେତିକି ଥାଉ । କିଛି ମୁଢ଼ି ଓ ଚିନାବାଦାମ ଖାଇନିଅ ।” ମା’ କିଛି ମୁଢ଼ି ଓ ଚିନାବାଦାମ ସେମାନଙ୍କୁ ଦେଇ ଚାଲିଗଲେ ।

ଚିନାବାଦାମ ଖାଉ ଖାଉ ରାମୁ ପଚାରିଲା—ଆଳୁଟା ଗୋଟାଏ କାଣ୍ଡ । ଚିନାବାଦାମ ମୂଳରେ ଫଳୁଛି । ତାହେଲେ ଚିନାବାଦାମଟା ଗୋଟାଏ ମୂଳ ନା କାଣ୍ଡ ?”

ଶାମୁ ବଡ଼ ଅଡୁଆରେ ପଡ଼ିଗଲା । ସାର୍ କ୍ଲାସରେ ଅଦା, ହଳଦୀ, ପିଆଜ, ସାରୁ ଇତ୍ୟାଦି ବିଷୟରେ ପଢ଼ାଇଥିଲେ । କିନ୍ତୁ ଚିନାବାଦାମ ବିଷୟରେ ତ କିଛି କହିନାହାନ୍ତି । ତଥାପି ସେ ଭାବି ଚିନ୍ତି କହିଲା, “ବୋଧହୁଏ କାଣ୍ଡ ହୋଇଥିବ । ମୁଁ ଭଲକରି ଜାଣି ନାହିଁ । ବାପା ଆସନ୍ତୁ ପଚାରି ବୁଝିନେବା ।”

ଗୋପାଳ ବାବୁ ଦିନ ଏଗାରଟା ବେଳକୁ ଘରକୁ ଫେରିଲେ । ଖିଆପିଆ ସରିଲା ପରେ ଶାମୁ ପଚାରିଲା—ବାପା, ଚିନାବାଦାମଟା ମୂଳ କି କାଣ୍ଡ ? ରାମୁ କହିଲା—

"ଚିନାବାଦାମ ତ ମୂଳରେ ଫଳୁଛି । ତେଣୁ ମୂଳ ହେବ । ଏକଥା କଣ ବାପାଙ୍କୁ ପଚାରୁଛୁ ?"




[ ଚିନାବାଦାମ ଗଛରେ ପତ୍ର, ଫୁଲ ଓ ଫଳ ]

ଗୋପାଳ ବାବୁ ହସିଲେ । ଗୋଟାଏ ଚିନାବାଦାମକୁ ଫଟାଇ ଦୁଇଫାଳ କରିଦେଲେ । ତାପରେ ରାମୁ ଓ ଶାମୁକୁ କହିଲେ—ଦେଖିଲ, ଭିତରେ କଣ ଅଛି । ରାମୁ ଓ ଶାମୁ ଏକା ସ୍ୱରରେ ଉତ୍ତର ଦେଲେ, "ବାପା, ଚିନାବାଦାମ ଭିତରେ ମଞ୍ଜି

ଅଛି ।" ଗୋପାଳ ବାବୁ ପୁଣି ପ୍ରଶ୍ନ କଲେ, "ମଞ୍ଜି କାହା ଭିତରେ ଥାଏ ?" ଦୁହେଁ ଯାଙ୍ଗେ ସାଙ୍ଗେ କହିଲେ, "ମଞ୍ଜି ଫଳ ଭିତରେ ଥାଏ ।"

ଗୋପାଳ ବାବୁ କହିଲେ—ଚନାବାଦାମ ଭିତରେ ମଞ୍ଜି ଅଛି । ତେଣୁ ଚନାବାଦାମ ଗୋଟିଏ ଫଳ । କିନ୍ତୁ ଶାମୁ ମନକୁ କଥାଟା ପସନ୍ଦ ହେଲାନି । ସେ ପଚାରିଲା—ଗଛ ଡାଳରେ ପ୍ରଥମେ ଫୁଲ ଫୁଟେ । ତାପରେ ଫୁଲରୁ ଫଳ ହୁଏ । ଚନାବାଦାମ ଗଛର ଫଳ ମାଟି ଭିତରେ କେମିତି ହେଲା ? ଚନାବାଦାମ ଗଛର ମାଟି ଭିତରେ କଣ ଫୁଲ ଫୁଟେ ?

ଗୋପାଳବାବୁ ବଡ଼ ଅଡୁଆରେ ପଡ଼ିଲେ । କହିଲେ—ଆଜି ଚାରିଟା ବେଳକୁ ଆମ କଲେଜ ପାଖକୁ ଯିବା । ସେଠାରେ ଦେଖିବୁ ଚନାବାଦାମ କିପରି ମାଟି ଭିତରେ ହୁଏ ।

ଚାରିଟା ବେଳକୁ ରାମୁ, ଶାମୁ ଓ ଗୋପାଳବାବୁ କଲେଜ ବଗିଚାକୁ ଗଲେ । ଗୋପାଳବାବୁ ସେମାନଙ୍କୁ ଚନାବାଦାମ ଲଗାଯାଇଥିବା ଗୋଟିଏ ପଟାଳି ଦେଖାଇଲେ । ତାପରେ କହିଲେ—ଦେଖ, ଚନାବାଦାମ ଗଛରେ ହଳଦିଆ ରଙ୍ଗର କେତେ ଗୁଡ଼ିଏ ଫୁଲ ଫୁଟିଛି । ସବୁତକ ଫୁଲ ଗଛର ଡାଳରେ ଫୁଟିଛି । ମାଟି ଭିତରେ ଫୁଲ ଆଦୌ ଫୁଟି ନାହିଁ ।

ଶାମୁ କହିଲା—ଯେତେ ଗଛ ଅଛି, ସବୁ ଗଛର ଡାଳରେ ଫୁଲ ଫୁଟେ । ତା'ପରେ ଡାଳରେ ଫଳ ହୁଏ । କିନ୍ତୁ ଚନାବାଦାମ ଗଛର ଡାଳରେ ଫୁଲ ଫୁଟୁଛି ଅଥଚ ଫଳ ମାଟିତଳେ କେମିତି ହେଉଛି ?'

ଗୋପାଳ ବାବୁ କହିଲେ ଏଇ ତ ବଡ଼ ଆଶ୍ଚର୍ଯ୍ୟ କଥା । ଏଇ ଦେଖ, ଚିନାବାଦାମ ଫଳ ଗଛ ସହ ଲାଗିଛି । ଚିନାବାଦାମ ଫଳ ଓ ଗଛ ମଝିରେ ସୂତୁଲି ଭଳି ଏକ ଅଂଶ ରହିଛି । ଏଇଟିକୁ ଚିନାବାଦାମ ଗଛର ଓହଳ କୁହାଯାଏ ।

ବର୍ତ୍ତମାନ ତୁମେମାନେ ଏଇ ଫୁଲଟିକୁ ଦେଖ । ଫୁଲରେ ପାଞ୍ଚଟି ହଳଦିଆ ପାଖୁଡ଼ା ରହିଛି । ପରାଗସଙ୍ଗମ ଘଟିବା ପରେ ପରେ ଏହି ପାଖୁଡ଼ାଗୁଡ଼ିକ ଖସି ପଡ଼ନ୍ତି । କିନ୍ତୁ ପାଖୁଡ଼ା ତଳେ ଥିବା ଡିମ୍ବାଶୟ ଗଛ ସହ ଲାଗିରହେ ।



[ ଚିନାବାଦାମ ଓହଳ ମାଟି ଭିତରକୁ ଯାଉଛି । ]

ଶାମୁ ପଚାରିଲା—ଏ ଡିମ୍ବାଶୟରୁ କଣ ଫଳ ହୁଏ ? ଗୋପାଳ ବାବୁ କହିଲେ—ଡିମ୍ବାଶୟ ତଳେ ଥିବା କୋଷ-ଗୁଡ଼ିକ ଲମ୍ବ ହୋଇ ତଳକୁ ବଢ଼ିବାରେ ଲାଗନ୍ତି । ଏହି କୋଷ-ଗୁଡ଼ିକ ଶେଷରେ ଓହଳରେ ପରିଣତ ହୁଅନ୍ତି । ଓହଳର ଅଗ୍ର ଭାଗରେ ଡିମ୍ବାଶୟ ଲାଗି ରହିଥାଏ ।

ଗୋପାଳବାବୁ ସେମାନଙ୍କୁ ଗୋଟିଏ ଓହଳ ଦେଖାଇଲେ । ତାହା ଯାଇ ମାଟିକୁ ଅଳ୍ପ ଛୁଇଁ ରହିଥାଏ । ତାପରେ କହିଲେ—"ଓହଳ ମାଟି ଭିତରକୁ ଆସ୍ତେ ଆସ୍ତେ ଯାଏ । ମାଟି ଭିତରେ ଅଳ୍ପ ଗଭୀରକୁ ଗଲାପରେ, ଆଉ ଲମ୍ବରେ ବଢ଼େ ନାହିଁ । ଡିମ୍ବାଶୟଟି ମାଟି ସହ ସମାନ୍ତରାଳ ହୋଇ ବଢ଼େ । କିଛି ଦିନ ପରେ ଏହି ଡିମ୍ବାଶୟଟି ଚିନାବାଦାମ ଫଳରେ ପରିଣତ ହୁଏ ।"

ଶାମୁ ପଚାରିଲା—ଚିନାବାଦାମ ଗଛର ସବୁ ଫୁଲରୁ କଣ ଫଳ ହୁଏ ? ଗୋପାଳ ବାବୁ କହିଲେ—"ନା, ସବୁ ଫୁଲରୁ ଫଳ ହୁଏ ନାହିଁ । କେବଳ ମାଟି ପାଖକୁ ଲାଗି ରହିଥିବା ଫୁଲରୁ ଫଳ ହୁଏ । କାରଣ ଏଗୁଡ଼ିକର ଓହଳ ସହଜରେ ମାଟି ଭିତରେ ପଶିପାରେ, କିନ୍ତୁ କାଣ୍ଡର ଉପର ଭାଗରେ ଥିବା ଫଳର ଓହଳ ମାଟି ଭିତରେ ସହଜରେ ପଶି ପାରନ୍ତି ନାହିଁ ।"

ଶାମୁ କହିଲା—"ଏ ତ ପ୍ରକୃତିର ଆଶ୍ଚର୍ଯ୍ୟ ଭିତରୁ ଗୋଟିଏ । ଗୋପାଳ ବାବୁ କହିଲେ—ହଁ, ପ୍ରକୃତିର ଏ ଗୋଟିଏ ଆଶ୍ଚର୍ଯ୍ୟ । ଚିନାବାଦାମ ଗଛର ଫୁଲ ଡାଳରେ ଫୁଟେ, କିନ୍ତୁ ଫଳ ମାଟି ଭିତରେ ହୁଏ ।"

ଶାମୁ କହିଲା—"ବର୍ତ୍ତମାନ ଚିନାବାଦାମ ଫଳ କିପରି ମାଟି ଭିତରେ ହୁଏ ବୁଝିଗଲି । ଚାଲ ଏଥର ଘରକୁ ଫେରି ଯିବା ।"

---

## ଯନ୍ତ୍ର ମଣିଷ

ରବିବାବୁ ଜଣେ ଇଞ୍ଜିନିୟର । ଘରେ ତାଙ୍କର ସ୍ତ୍ରୀ ଓ ଗୋଟିଏ ପୁଅ ରାଜୁ । ରାଜୁ ପଞ୍ଚମ ଶ୍ରେଣୀରେ ପଢ଼େ । ଖେଳନା ସଂଗ୍ରହ କରିବା ରାଜୁର ବଡ଼ ସଉକ । ରବିବାବୁ ସହରକୁ ଅଫିସ କାମରେ ଅନେକ ଥର ଯାଆନ୍ତି । ଫେରିଲା ବେଳକୁ ଅନେକ ଛୋଟବଡ଼ ଖେଳନା ନେଇ ଆସନ୍ତି । ରାଜୁ ସେସବୁକୁ ସାଇତି ରଖେ ଓ ପାଠପଢ଼ା ସରିଲେ ବସି ଖେଳେ ।

ଥରେ ରବିବାବୁ ସହରକୁ ଯାଇଥିଲେ । ସହରରୁ ଫେରି ରାଜୁକୁ କହିଲେ—ରାଜୁ, ତୋ ପାଇଁ ଆଜି ଗୋଟିଏ ନୂଆ ଖେଳନା ଆଣିଛି । ଏହା କହି ରାଜୁକୁ ଖେଳନା ପ୍ୟାକେଟ୍‌ଟା ଧରାଇ ଦେଲେ । ରାଜୁ ଆଗ୍ରହର ସହିତ ପ୍ୟାକେଟ୍‌ଟିକୁ ଖୋଲିଲା । ଖୋଲି ଦେଖେ ତ ଭିତରେ ମଣିଷ ଆକୃତିର ଏକ ଖେଳନା ଅଛି । କିନ୍ତୁ ଅଦ୍ଭୁତ ପ୍ରକାରର ଦେଖାଯାଉଛି ।

ରାଜୁ ପଚାରିଲା—ବାପା, ଏଇଟା କି ଖେଳନା ? ଏଇଟା କେମିତି ଚାଲିବ ? ରବିବାବୁ କହିଲେ ଏଇଟି ହେଉଛି ଯନ୍ତ୍ର ମଣିଷ । ଏହା ଭିତରେ ବ୍ୟାଟେରୀ ଅଛି । ସୁଇଚ୍ ଟିପି ଦେଲେ ଚାଲିବ । ରବିବାବୁ ରାଜୁକୁ ଖେଳନାର ସୁଇଚ୍ ଦେଖାଇ ଦେଲେ । ରାଜୁ ଖେଳନାଟିର ସୁଇଚ୍‌ଟିକୁ ଟିପି ଦେଲା । ଖେଳନାଟି ଆଗକୁ

ଗଡ଼ ଗଡ଼ ଚାଲିଲା । ଖେଳନାର ବନ୍ଧୁକରୁ ଆପେ ଆପେ ଗୁଳି ଶବ୍ଦ ଶୁଣାଗଲା । ରାନୁ ଭାରି ଖୁସି ହୋଇଗଲା ।

ରାନୁ ପଚାରିଲା—ବାପା, ଏଇଟି ସିନା ଖେଳନା ଯନ୍ତ୍ର-ମଣିଷ । ପ୍ରକୃତ ଯନ୍ତ୍ର-ମଣିଷ ଦେଖିବାକୁ କି ଭଳିଆ ?

ରବିବାବୁ କହିଲେ—ଯନ୍ତ୍ର-ମଣିଷ ବିଭିନ୍ନ ଆକୃତିର । ପ୍ରଥମେ ଯେତେବେଳେ ଯନ୍ତ୍ର-ମଣିଷ ତିଆରି ହେଲା, ତାହା ମଣିଷ ଆକୃତି ପରି ତିଆରି କରାଯାଉଥିଲା । କାରଣ ଯନ୍ତ୍ର-ମଣିଷ ମଣିଷର କିଛି କାମ ସ୍ୱୟଂଚାଳିତ ଭାବେ କରୁଥିଲା ।

ରାନୁ ପଚାରିଲା—ବାପା, ସ୍ୱୟଂଚାଳିତର ଅର୍ଥ କଣ ? ରବିବାବୁ କହିଲେ—ଯେଉଁ ଯନ୍ତ୍ର ନିଜେ ମନୁଷ୍ୟର ବିନା ସାହାଯ୍ୟରେ କିଛି କାମ କରିପାରେ, ତାକୁ ସ୍ୱୟଂଚାଳିତ ଯନ୍ତ୍ର କହନ୍ତି । ଯନ୍ତ୍ର-ମଣିଷ ଦେହରେ ଅନେକ ଯନ୍ତ୍ର ଖଞ୍ଜି ଦିଆ ଯାଇଥାଏ । ଏହି ଯନ୍ତ୍ରଗୁଡ଼ିକ ବିଜୁଳି ଶକ୍ତି ସାହାଯ୍ୟରେ କାମ କରନ୍ତି । ବିଜଳି ସୁଇଚ୍ ଚିପି ଦେଲେ ଯନ୍ତ୍ର-ମଣିଷକୁ ଦିଆ ଯାଇଥିବା କାମ ସେ ନିଜେ ନିଜେ କରେ ।”

ରାନୁ ପଚାରିଲା—ଯନ୍ତ୍ର-ମଣିଷ କି କି କାମ କରିପାରିବ ? ରବିବାବୁ କହିଲେ ଯନ୍ତ୍ର-ମଣିଷ ଅନେକ କାମ କରିପାରିବ । ଆମେରିକା, ଜାପାନ, ସୁଇଡ଼େନ, ବ୍ରିଟେନ୍ ଆଦି ଦେଶ-ମାନଙ୍କରେ ଅନେକ ସଂଖ୍ୟାରେ ଯନ୍ତ୍ରମଣିଷ ବ୍ୟବହାର କରା-ଯାଉଛି । ଏଗୁଡ଼ିକ କଳକାରଖାନାଠାରୁ ଆରମ୍ଭ କରି ଟ୍ରାଫିକ୍ ଚାଳନା ଇତ୍ୟାଦି କାମ କରୁଛନ୍ତି ।



[ ଯନ୍ତ୍ର ମଣିଷ ]

ବାନୁ ପଚାରିଲା—କଳକାରଖାନାରେ ଏଗୁଡ଼ିକ କି କି କାମ କରନ୍ତି ? ରବିବାବୁ କହିଲେ—କଳକାରଖାନାରେ ଏଗୁଡ଼ିକ ଝଲେଇ କାମ କରନ୍ତି । ଭିତଲ୍ କାଚକୁ ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ନିଅନ୍ତି । ଖୁବ୍ ଜୋର୍‌ରେ ତାତିଥିବା ଲୁହା ଖଣ୍ଡଗୁଡ଼ିକୁ ଉଠାଇ ବିଭିନ୍ନ ଉପକରଣ ତିଆରି କରିବା ପାଇଁ ରଖନ୍ତି । ବଡ଼ ଭାରୀ ଇଞ୍ଜିନକୁ ଚଲାନ୍ତି । ଗାଡ଼ି, ମଟର ଓ ବିଭିନ୍ନ ଯନ୍ତ୍ରପାତିକୁ ରଙ୍ଗ କରନ୍ତି ।

ରାନୁ ପଚାରିଲା—ବାପା, ଏ ସବୁ କାମ ତ ମଣିଷ ନିଜେ କରିପାରିବ । କିନ୍ତୁ ଏତେ ଟଙ୍କା ଖର୍ଚ୍ଚ କରି ଯନ୍ତ୍ର-ମଣିଷ କାହିଁକି ତିଆରି କରୁଛନ୍ତି ।

ରବିବାବୁ କହିଲେ—ମଣିଷ ସବୁ ପରିସ୍ଥିତିରେ ଠିକ୍ ଭାବରେ କାମ କରିପାରିବ ନାହିଁ । ଲୁହା କାରଖାନା, କାଚ କାରଖାନା ଇତ୍ୟାଦିରେ ଅନେକ ଗରମ ହୁଏ । ଲୁହା ଖଣ୍ଡ ତିଆରି ହୋଇ ସାରିଲା ବେଳକୁ ଖୁବ୍ ଗରମ ହୋଇଥାଏ । ଏହାକୁ ମଣିଷ ଛୁଇଁଲେ ସଙ୍ଗେ ସଙ୍ଗେ ପାଉଁଶ ହୋଇଯିବ । ଏଭଳି ଅତି ଉତପ୍ତ ଲୁହା ଖଣ୍ଡଗୁଡ଼ିକୁ ଯନ୍ତ୍ର-ମଣିଷ ଉଠାଇ ଆଣି ଠିକ୍ ସ୍ଥାନରେ ରଖେ ।

କେତେକ କାରଖାନାରେ ଖୁବ୍ ଥଣ୍ଡାରେ ଜିନିଷ ତିଆରି କରାଯାଏ । ଏହା ଏତେ ଥଣ୍ଡା ଯେ ମଣିଷ ତା ପାଖକୁ ଗଲେ ବରଫ ପାଲଟିଯିବ । ତେଣୁ ଏଠାରେ କାମ କରିବା ପାଇଁ ଯନ୍ତ୍ର ମଣିଷକୁ ରଖାଯାଇଥାଏ ।

ଗଭୀର ସମୁଦ୍ର ଦେହରେ ଅନେକ ମୂଲ୍ୟବାନ୍ ପଦାର୍ଥ ରହିଛି । ଏଗୁଡ଼ିକ ବିଷୟରେ ଜାଣିବା ପାଇଁ ହେଲେ ଗଭୀର ସମୁଦ୍ର ଭିତରେ ବୁଡ଼ିବାକୁ ପଡ଼ିବ । କିନ୍ତୁ ଗଭୀର ସମୁଦ୍ରର ଜଳ ମଣିଷ ଶରୀର ପାଇଁ କ୍ଷତିକାରକ । ତା'ଛଡ଼ା ଗଭୀର ସମୁଦ୍ରରେ ଭୟଙ୍କର ତିମି, ଶାର୍କ ଓ ବିଷାକ୍ତ ସାପ ରହିଛନ୍ତି । ତେଣୁ ଯନ୍ତ୍ର-ମଣିଷକୁ ସମୁଦ୍ର ଭିତରେ କଣ ରହିଛି, ସେ ବିଷୟରେ ବିବରଣୀ ସଂଗ୍ରହ କରିବା ,, ପଠାଯାଏ । ଯନ୍ତ୍ର-ମଣିଷ ଖୁବ୍ ସୁବିଧାରେ ଏସବୁ କାମ କରିପାରେ ।

ରାନୁ ପଚାରିଲା—ବାପା, ଏସବୁ ଭୟଙ୍କର ଗରମ, ଶୀତ ଓ ବିପଦସଙ୍କୁଳ ସ୍ଥାନରେ ଯନ୍ତ୍ର-ମଣିଷର କିଛି କ୍ଷତି ହୁଏନାହିଁ ?

ରବିବାବୁ କହିଲେ—ଯନ୍ତ୍ର-ମଣିଷ ଏଭଳି ଭାବରେ ତିଆରି ହୋଇଥାଏ ଯେ ତାହା ସବୁ ବିପଦଶଙ୍କୁଳ ପରିସ୍ଥିତିରେ କାମ କରିପାରିବ । ଅତ୍ୟନ୍ତ ଗରମ ପାଇଁ ରବିଟ ସ୍ୱତନ୍ତ୍ର ପୋଷାକ ପିନ୍ଧେ ନାହିଁ । କେତେକ ଔଷଧ ତିଆରି କାରଖାନାରେ ବିଷାକ୍ତ ଗ୍ୟାସ୍ ଭିତରେ କାମ କରିବାକୁ ପଡ଼େ । ମଣିଷ ପାଇଁ ସ୍ୱତନ୍ତ୍ର ମୁଖା ଦରକାର ପଡ଼ନ୍ତା । କିନ୍ତୁ ଯନ୍ତ୍ର-ମଣିଷ ପାଇଁ ଏ ସବୁର କିଛି ଦରକାର ପଡ଼େ ନାହିଁ ।

ଜାପାନ, ଆମେରିକା ଇତ୍ୟାଦି ଦେଶରେ ଅନେକ ପରମାଣୁ ଶକ୍ତି କେନ୍ଦ୍ର ଅଛି । ଏହି ପରମାଣୁ ଶକ୍ତି କେନ୍ଦ୍ରରୁ ଏକ ପ୍ରକାର ତେଜଷ୍କ୍ରିୟ ଆଲୁଅ ବାହାରେ । ଏହାକୁ ସହ୍ୟକରି ମଣିଷ ଆଦୌ କାମ କରିପାରିବ ନାହିଁ । କିନ୍ତୁ ଯନ୍ତ୍ର-ମଣିଷ ଏଠାରେ ସୁବିଧାରେ କାମ କରିପାରିବ ।

ସ୍ୱାନ୍ ପଚାରିଲା—ବାପା, ମଣିଷ ଭାବିଚିନ୍ତି କାମକରେ । ତେଣୁ ମଣିଷ ହାତରେ ଯେଉଁ କାମ କରିବ ତାହା ଖୁବ୍ ଭଲ ହେବ । ଯନ୍ତ୍ର-ମଣିଷ ଭୁଲ କରି ଖରାପ ଜିନିଷ ତିଆରି କରେ ନାହିଁ କି ?

ରବିବାବୁ କହିଲେ--ସାଧାରଣତଃ ଯନ୍ତ୍ର-ମଣିଷକୁ ବିପଦ ଶଙ୍କୁଳ କିମ୍ବା ବିରକ୍ତିକର କାମ ଦିଆଯାଇଥାଏ । ଗୋଟିଏ କାମକୁ ବାରମ୍ବାର କଲେ ମଣିଷ ବିରକ୍ତ ହୋଇଯାଏ । ଫଳରେ ବେଳେ ବେଳେ କାମ ଭଲଭାବରେ କରେ ନାହିଁ । କିନ୍ତୁ ଯନ୍ତ୍ର-ମଣିଷ ବିରକ୍ତି କଣ ଜାଣେ ନାହିଁ । ତାକୁ ଯାହା କରିବାକୁ ନିର୍ଦ୍ଦେଶ ଦିଆଯାଇଛି ତାକୁ ଅବିରାମ କରି ଚାଲେ । ତେଣୁ କାମରେ ଏ୍ରୁଟି ହୁଏ ନାହିଁ ।

ରାନୁ କହିଲା— ବାପା, ଯନ୍ତ୍ର-ମଣିଷ କିପରି କାମ କରେ ? କାମ କଲାବେଳେ କଣ ଦୁର୍ଘଟଣା ଘଟେ ନାହିଁ ?

ରବିବାବୁ କହିଲେ— ଯନ୍ତ୍ର-ମଣିଷ ସ୍ୱୟଂଚାଳିତ ହେଲେ ମଧ୍ୟ ମଣିଷ ତାକୁ କାମରେ ଲଗାଇଥାଏ । ଯନ୍ତ୍ର-ମଣିଷ ଦେହରେ ଗୋଟିଏ କମ୍ପ୍ୟୁଟର ଲାଗିଥାଏ । ଏହା ଯନ୍ତ୍ର-ମଣିଷ କିଭଳି କାମ କରିବ ତାହାକୁ ନିୟନ୍ତ୍ରଣ କରେ । କୌଣସି ଯାନ୍ତ୍ରିକ ତ୍ରୁଟି ହେଲେ କମ୍ପ୍ୟୁଟର ତାହାକୁ ଆପେ ଆପେ ଠିକ୍ କରିନିଏ । ବେଳେ ବେଳେ ଯନ୍ତ୍ର-ମଣିଷ କାମ କଲାବେଳେ ଦୁର୍ଘଟଣା ମଧ୍ୟ ଘଟିଥାଏ । ଯଦି ଯନ୍ତ୍ର-ମଣିଷକୁ ଠିକ୍ ଭାବରେ କାମ କରିବାକୁ ନିର୍ଦ୍ଦେଶ ଦିଆ ନଯାଇଥାଏ, ତାହେଲେ ଏଭଳି ଦୁର୍ଘଟଣା ଘଟେ ।

ରାନୁ ପଚାରିଲା—ବାପା, କେଉଁ ଦେଶରେ ସବୁଠାରୁ ବେଶୀ ଯନ୍ତ୍ର-ମଣିଷ ଅଛନ୍ତି ? ରବିବାବୁ କହିଲେ—ଜାପାନରେ ସବୁଠାରୁ ବେଶୀ ସଂଖ୍ୟାରେ ଯନ୍ତ୍ର-ମଣିଷ କାମ କରୁଛନ୍ତି । ପ୍ରାୟ ୨୦,୦୦୦ ଯନ୍ତ୍ର-ମଣିଷ ଜାପାନରେ କଳକାରଖାନାରେ କାମ କରୁଛନ୍ତି । ତା'ଛଡ଼ା ଆମେରିକା, ଜର୍ମାନୀ, ସୁଇଡ଼େନ, ବ୍ରିଟେନ୍ ଓ ଶିଳ୍ପୋନ୍ନତ ଦେଶମାନେ ବହୁତ ସଂଖ୍ୟକ ଯନ୍ତ୍ର-ମଣିଷକୁ କାମରେ ଲଗାଯାଉଛି ।

ଏତିକି ବେଳକୁ ମା' ଆସି ପହଞ୍ଚିଗଲେ । ମା' କହିଲେ ଭଲ ଖେଳନାଟିଏ ହୋଇଛି । ଆଜି ସେତିକି ଖେଳ ଥାଉ । ଚାଲ୍ ପାଠ ପଢ଼ିବୁ । ସ୍କୁଲ ପାଠ ତୋର ଅନେକ ବାକି ଅଛି ।

ରାନୁ ଖେଳନାଟିକୁ ସାଙ୍ଗରେ ନେଇ ପଢ଼ିବା ଟେବୁଲ ପାଖକୁ ଚାଲିଗଲା ।

———